# ମାଛମାନେ ସବୁ ହସିଲେ ଫେଁ

ଦାଶ ବେନହୁର



Digitized by srujanika@gmail.com

# ମାଛମାନେ ସବୁ ହସିଲେ ଫେଁ

ଦାଶ ବେନହୁର




କାଞ୍ଚନ
ଗଜପତି ନଗର, ସୂତାହାଟ, କଟକ-୭୫୩୦୦୧

Digitized by srujanika@gmail.com




ଲେଖକ

ଦାଶ ବେନହୁର

କଥାକାର-୬ମ-୧୬୧, ଶୈଳଶ୍ରୀବିହାର,

ଭୁବନେଶ୍ୱର-୭୫୧୦୨୧



ପ୍ରକାଶକ

**ସନ୍ତୋଷ ପବ୍ଲିକେଶନ୍ସ**

କାଞ୍ଚନ

ଗଜପତି ନଗର, ସୂତାହାଟ, କଟକ-୭୫୩୦୦୧

ଟେଲିଫୋନ୍ : ୦୬୭୧-୨୪୨୫୬୭୦

ମୁଦ୍ରଣ

ଅନ୍ନପୂର୍ଣ୍ଣା ପ୍ରିଣ୍ଟର୍ସ

ଗୋସାଣିନୂଆଗାଁ, ବ୍ରହ୍ମପୁର-୭୬୦୦୦୩

ମୋବାଇଲ-୯୮୬୧୦୧୧୩୫୬

ଚିତ୍ର

ଚିତ୍ରଦେବ

ପ୍ରଥମ ପ୍ରକାଶ

ବିଜୟା ଦଶମୀ-୨୦୧୧

ମୂଲ୍ୟ

ଚାଳିଶ ଟଙ୍କା

**ISBN 978-81-86475-60-7**



*Digitized by srujanika@gmail.com*

## ଏଥିରେ ଅଛି...



Digitized by srujanika@gmail.com



Digitized by srujanika@gmail.com

# ଗାଆଁ କଥା କିଆଁ ପଚାର

ମଟର ଗାଡ଼ି ଲାଗିଚି ଧାଡ଼ି
ଘୁଉଁ ଘାଆଁ ପେଏଁ ପାଆଁ,
ସହର ଦେହେ ମଟର ମାଳ
ଶୂନ୍ ଶାନ୍ ଦିଶେ ଗାଆଁ ।



ଗାଆଁ କଥା କିଆଁ ପଚାର;
ସବୁ ଠୁଳ ହେଲା ସହରେ ଆସି
ସବୁକଥା ହେଲା ବେପାର,
ସହରରେ ବାଣ
ଫୁଟଇ ଢୋଓ;
ଗାଆଁରେ ବିଲୁଆ
ହୁଉକେ ହୋଓ ।



Digitized by srujanika@gmail.com

# ସାଥିରେ ଟରଚ ଆଣିଥା

ରାତି ମରିଗଲେ
ଅନ୍ଧାର ମରେ
ମେଘ ମରିଗଲେ
ବରଷା ମରେ
ଆଲୁଅ ମରିଲେ ଛାଇ,
ମନ ମରିଗଲେ
ସରାଗ ମରେ
ଜାଣିଛ କି ନାହିଁ ଭାଇ ?



ଜାଣି ନାହିଁ ଯଦି ଜାଣିଥା,
ଭଲ ଭେଲପାଇଁ
ଅଜଣା ବାଟକୁ
ସାଥିରେ ଟରଚ ଆଣିଥା ।

ଆଲୁଅ ଡାକେ ଛକ୍,
ଅନ୍ଧାର ଡାକେ
ଗହୀର ବିଲେ
ବେଙ୍ଗୁଲୀ ଡିଏଁ ଫକ୍ ।



Digitized by srujanika@gmail.com

# ବୋଇତି କଖାରୁ କଅଁଳ ଫୁଲ

ବୋଇତି କଖାରୁ
କଅଁଳ ଫୁଲ,
କିଏ ସେ ହୋଇବ
ତାହାର ତୁଲ ।

ଅଣ୍ଡିରା ଫୁଲକୁ
ଛିଣ୍ଡେଇ ନିଅ,
ହଳଦୀ ପାଣିରେ
ମେଣ୍ଡେଇ ଦିଅ ।

ଚାଉଳ ପିଠଉ
ଗୋଳେଇ ଭାଜ,
ପଖାଳକୁ ସିଏ
ଅସଲ ସାଜ ।

ଯେତେ ଖାଉଥିବୁ ଖାଉଥା'
ବୋଇତାକୁ ଗୁଣ ଗାଉଥା ।



Digitized by srujanika@gmail.com

# ପଡ଼ିଲା ଖରା

ପଡ଼ିଲା ଖରା,
ତାତିଲା ଧରା,
ନିଆଁ ଚରିଗଲା
ଦୁନିଆ ସାରା ।

ଝାଳ ଗମ୍‌ଗମ୍
ବହିଲା ଝାଂଜି,
ଏ ସନ ତାତିବ
କହିଚି ପାଂଜି ।

ପାଂଜି ନା ଫାଂଜି
ଖେଳିବା ଆସ,
ମୁଣ୍ଡରେ ଗାମୁଛା
ପଡ଼ିଛି ଫାଶ ।

ପିଇ ପେଟେ ପେଟେ ପାଣି,
ଫୁଟି, ତରଭୁଜ
ପଣା, ତୋରାଣି
ଯେତେ ମନ ସେତେ ଆଣି ।



Digitized by srujanika@gmail.com

# କିଏ ପାରିବ କହି ?

ଆମ ଗଣେଶ
ପେଟ ପଣସ
ଖାଆନ୍ତି ବୁନ୍ଦି ଲଡ୍ଡୁ,
ଦେହରେ ତାଙ୍କ
ଝିନ ବସନ
ପିନ୍ଧନ୍ତି ସୁନାଖଡ୍ଡୁ ।



ତାଙ୍କ ଲିଖନ
ମହିମା କଥା
କିଏ ପାରିବ କଳି,
ମହାଭାରତ
ଲେଖିଲେ ସିଏ
କଂପିଉଟର ଭଳି ।

ମୂଷା ବିଚରା
ଛୋଟିଆ ଜୀବ
ବାହନ ଅଛି ହୋଇ,
କିଏ କହିବ
କେମିତି ତାଙ୍କୁ
ପାରୁଚି ସିଏ ବୋହି ?

ଟାଆକ ଡୁମା ଡୁମ୍,
କହିଲେ କହ
ନ ହେଲେ ତୁମ
ଅକଲ ହେଲା ଗୁମ୍ ।



Digitized by srujanika@gmail.com

# ଟିପିରି ଡାକୁଚି ଆ' ବଉଳ

ଶାଳଗଛ ଫୁଲ
ଶିରି ଶିରିକା
ପଣସ ପତର ଖୁଦ୍ରୁ,
ପାହାଡ଼ ମଥାରେ
ବାଦଲ ଠେକା
ମେଘ ଡାକେ ଗୁଡ୍ରୁ ଗୁଡ୍ରୁ ।

ଗଛ ସାଉଁ ସାଉଁ
ଛେଉକା ଖରା,
ପାହାଡ଼ ଗୁମୁରେ ଗୁମ୍,
ଟିପିରି ଡାକୁଚି
ଆ' ବଉଳ
ବାଗୁଡ଼ି ଖେଳିବା ଧୁମ୍ ।

ଡା' କିତିକିତି
ବାଗୁଡ଼ି ଖେଳ,
ସବୁଯାକ ପିଲା
ସେଇଠି ମେଳ ।



Digitized by srujanika@gmail.com

# ବହି ମୋ ମିତ

ଏଇ ବହିରେ ଗପ
ସେଇ ବହିରେ ଗୀତ,
ସବୁ ବହି ମୋ
ଅତି ଆପଣା
ସବୁ ବହି ମୋ ମିତ ।



ବହିରେ କେତେ କଥା
କଥାରେ କେତେ ନଥା,
ବହି ଗୋଟାକେ
ଦୁନିଆ ଗୋଟେ
ଭାବିଲେ ଘୂରେ ମଥା ।

ଟିଣିକି ଟିଣି ଟିଣି;
ବହିକୁ କଲେ
ସାଥୀ ସଂଗାତ
ଦୁନିଆ ଯିବ ଜିଣି ।



Digitized by srujanika@gmail.com

# ବମ୍ବାଜି ଡାକେ ଢୋଓ



ବାଣ ଫୁଟୁଛି
ଠାଇ... ଠିସ୍
ତାଳ ଫୋଟକା ଠୋଓ,
ହାବେଳି ଛୁଟେ
ସର୍... ସାଇଁ
ବମ୍ବାଜି ଡାକେ ଢୋଓ ॥



ଚକିରି ଘୂରେ
ସର୍... ସିରି
କୁମ୍ଭି ଡାକୁଛି ହୁସ୍,
ଚନ୍ଦ୍ର ଆତପ
ଝର୍... ଝିପ୍
ସାପ ବାଣଟା ଫୁସ୍ ।

ଠାଇ ଠୋଓ ଢୋଓ...
ବାଣ ଫୁଟଇ
ଫଟେଇ କାନ
କାନ୍ଦୁଥା ଭୋଓ ଭୋଓ ।



Digitized by srujanika@gmail.com

# ଅଳସୁଆର ସବୁ ଅଡୁଆ

ସମୟ ଗଡ଼ିଲେ
ବୟସ ଗଡ଼େ
ବୟସ ଗଡ଼ିଲେ ବଳ,
ମଣିଷ ବାପୁଡ଼ା
କାରଖାନାଟେ
ଭିତରେ ଚାଲିଛି କଳ ।



ବେଳ ଘୋରିଦିଏ
କଳର ଚକ
ଧିମେଇଯାଏ ତା' କାମ,
ଯାହା କରିଥାଏ
ବେଳ ହୁଁ ସିଏ
ତା' ଯୋଗୁଁ ତାହାର ନାମ ।

ଟାଆକ ଡୁମା ଡୁମ୍,
ଅଳସୁଆର
ସବୁ ଅଡୁଆ
ପାହାର ପଡ଼େ ଡୁମ୍ ।



Digitized by srujanika@gmail.com

# ପେଟ କଲା କୁଁ କାଁ

ଗୁଡୁରୁ ଗୁଡୁରୁ
ଗେଡୁ ଗୋସେଇଁ
ଯାଇଥିଲେ କୋ' ଗାଆଁ,
ଓଲଟା ସିଧା
ଖାଇଲେ କିସ
ପେଟ କଲା କୁଁ କାଁ ।



ନିଅ ତାଙ୍କୁ ଏବେ
ଘରକୁ ନିଅ,
ପାଣି ଭାଙ୍ଗି ତାଙ୍କ
ପେଟରେ ଦିଅ ।

ଓଷଦ ମୋଷଦ
ଦିଅ ଖୁଆଇ,
ଘଡ଼ିଏ ଛଟକେ
ଦିଅ ଶୁଆଇ ।

ପେଟ ଡାକିବ ହୁସ୍
ଗୋସେଇଁ ହେବେ ଖୁସ୍ ।



Digitized by srujanika@gmail.com

# ଖରା ଯାଇ ଶୀତ ହୋଇଲା

ବାଆ ସୁଲୁ ଚୁଲୁ
ବାଆ ସୁଲୁ ସୁଲୁ
ବାଆ ଶିରି ଶିରି ବୋହିଲା,
କିଏ ସେ କୋଉଠି
କଳ ବୁଲେଇଲା
ଖରା ଯାଇ ଶୀତ ହୋଇଲା ।



ଶୀତକୁ ଗୋଟିଏ
ଚଦର ଦିଅ,
ବାରମଜା ପୋଷେ
ହାତରେ ଦିଅ,
ଶୀତନାନୀ ଦବ ହସି;
ଉଷୁମ ଲାଗିବ
କାକର ଦେହ
ଓଡ଼ିଶୀ ଗାଇବ ବସି ।

ଡା' ଧିନି ଧିନି ତା';
ନିଗିଡ଼ା ନାକ
ଜାଡ଼ୁଆ ଓଠ,
ଖୋଜିଲେ କପେ ଚା' ।



Digitized by srujanika@gmail.com

# ମାଛମାନେ ସବୁ ହସିଲେ ଫେଁ

ପୋଖରୀରେ ପାଣି
ହୁଡ଼ା ଶୀତଳ
ମହୁରାଳି ମେଳେ
ଖେଳେ ଚିତଳ
ଆଡ଼ିରେ ନଡ଼ିଆ ଧାଡ଼ି;
ପତର ଉହାଡ଼େ
ହସୁଲୀ ଚାଂଦ
ଓଢ଼ଣା ଦେଇଛି କାଢ଼ି ।

ରୁପା ଚିକି ଚିକି
ଜୋଛନା ଧାରା
ବୁଣି ବୁଣି ଯାଏ
ପୋଖରୀ ସାରା
ଚିତଳର କୁନି ଝିଅ;
ମୁହଁକୁ ହଲେଇ
ଗେଲେଇ କହେ
ଜୋଛନା ଭରା ମୋ ଦିହ ।



ମାଛମାନେ ସବୁ
ହସିଲେ ଫେଁ,
କୁନିଝିଅ ଶୁଣି
ରଡ଼ିଲା ଭେଁ ।



Digitized by srujanika@gmail.com

# ଗପ ଶୁଣିବାକୁ ପଡ଼ିଲା ସପ

ଛାଇ ଲେଉଟାଣି
ଉପରବେଳା,
ବରଗଛ ଡାଳେ
ଲାଗିଲା ମେଳା ।
ଶୁଆ ଶାରି ବଗ
କଜଳପାତି,
କାଉ କୁମ୍ଭାଟୁଆ
ଉଠିଲେ ମାତି ।



କୋଇଲି ଗାଇଲା କୁଉ;
ସଂଜ ଆଇଲାରେ
କହିଲା ପେଚା
ବାଦୁଡ଼ି କହିଲା ଫୁଉ ।

ଅଗପ ଗପ,
ଗପ ଶୁଣିବାକୁ
ପଡ଼ିଲା ସପ ।



Digitized by srujanika@gmail.com

# ହିମ୍ମତ ରଖ ଭାଇ

ମାଟି ଡୁଲୁକେ
ପାଣି ଫୁଲୁକେ
ପବନ ଧାଏଁ ଖର,
କାଳେ ଆସିବ
ଚକ୍କର ବାତ
ସଭିଏଁ ଡରଡର ।

ଚାଳ ଡାକୁଛି
ମିଅଟ ମଟ
କବାଟ ଧଡ଼ଧଡ଼,
କୋଉଠି ଗଛ
ଉପୁଡ଼ି ଯାଇ
ଶୁଭୁଛି ମଡ଼ମଡ଼ ।

ଡାକ ପଡ଼ିଛି
ଆସରେ ଧାଇଁ
ପାଣି ଡେଉଁଛି କୂଳ,
ଗାଆଁ କୁନ୍ଦର
ଇସ୍କୁଲ ଘରେ
ସଭିଏଁ ହୁଅ ଠୁଳ ।

ହିମ୍ମତ ରଖ ଭାଇ,
ଆପଦ ବେଳେ
ମିଳାଅ ହାତ
ଦୁଃଖ ଲୁଚିବ ଧାଇଁ ।



Digitized by srujanika@gmail.com

# ସିଇରି ସିରି ପାଣି

ଦେହ ପିନ୍ଧୁଛି
ଜାମା ଜଂଘିଆ
ମୁଣ୍ଡ ପିନ୍ଧୁଛି ଟୋପି;
ପାଟ ପଟନି
ପଗଡ଼ି ପିନ୍ଧା
ଗଲାଣି କେଣେ ଛପି ।



ଗୋଡ଼ ପିନ୍ଧୁଛି
ଜୋତା ଚପଲ
ଚଷମା ଲୋଡ଼େ ଆଖି;
ଝାମ୍ପି ଧରି କେ
ଖୋଜୁନି ଛାଇ
କଠଉ ପାଦେ ରଖି ।

ସିଇରି ସିରି ପାଣି;
ବଦଳ ପାଲା
ଦୁନିଆ ରୀତି
ରଖିଥା ଭାଇ ଜାଣି ।



Digitized by srujanika@gmail.com

# ଘୁମୁରୁ ଘୁମୁରୁ ପାରା

ଫୁଲ ଫୁଟଇ
ବାସ ଛୁଟଇ
ଟୁଇଁ ଡାକଇ କୁଉର୍,
ଖରା ପଡ଼ଇ
ଦିନ ଗଡ଼ଇ
ଟୁଆଁ ଉଡ଼ଇ ଫୁଉର୍ ।





କୁକୁଡ଼ା ହାଂକେ
ଚୂଳକୁ ଝାଂକେ
କକ୍ କଅକ୍ କରର୍
ଟୁକୁନା ହାତେ
ଚକିରି ଘୂରେ
ଖର୍ ଖଅର୍ ଖରର୍ ।

ଘୁମୁରୁ ଘୁମୁରୁ ପାରା,
ମାଇଁଘର କୂଅ
ପାଣିଟା ମିଠା
ଖୁଡ଼ୀଘର ପାଣି ଖାରା ।



Digitized by srujanika@gmail.com

# ପଢ଼ିଲେ ଜିଣିବ ଗଡ଼

ବହିମେଳା ଆସ
          ଯିବାରେ ଭାଇ
ବହିମେଳା ଯିବା ଆସ,
ଅକ୍ଷର ବଜାର
          ଖୋଲିଛି ସେଠି
ଜାତିଜାତି ପାଠ ଚାଷ ।



ଗପ ଗୀତ ଛବି
          ଜଣା ଅଜଣା
କାରିଗରୀ କଉଶଳ,
ସବୁକଥା ଅଛି
          ବହିରେ ଛପା
ବହିସବୁ ବୁଦ୍ଧି ଫଳ ।

ବହି କିଣ ଭାଇ
          ନିଇତି ପଢ଼
ସାଥି ଜଣେ ଏକା ସେଇ,
ଅନ୍ଧାରେ ଆଲୁଅ
          ଦେଖାଏ ସିଏ
ଭଲ ବାଟ ଦିଏ ଫେଇ ।

ଭଲ ଭଲ ବହି ପଢ଼;
ଭଲ ବହି ଜାଣ
          ଜ୍ଞାନ ଓଷଦ
ପଢ଼ିଲେ ଜିଣିବ ଗଡ଼ ।



Digitized by srujanika@gmail.com

# ଚାଇଁ ଚଡ଼କ

ବେଂଗଳା ବୁଲିଲେ
କଲେଇ ବିଡ଼ା
ଫିଟିଫିଟି ହୁଏ ପାଳ,
ତେଲ ବାଜିଗଲେ
ଚିକ୍କଣ ଦିହ
ଚହକ ଦିଶଇ ବାଳ ।



ଜହ୍ନ ଜହକିଲେ
ଜହକେ ରାତି
ଉହାଡ଼େ ଅନ୍ଧାର ଥମେ,
କାଲି ଯଦି ଅଛି
ଇସ୍କୁଲ ଛୁଟି
ଆଜିର ଖେଳଟା ଜମେ ।



ପେଟ ପୂରିଥିଲେ
ମଧୁର କଥା
ମୁହଁରେ ଫୁଟଇ ହସ,
ଭାଜିଗଲା ଯଦି
ସରାଗ ଡଙ୍କ
କୁକୁରି କାକୁରି ବସ ।

ଶୁଣଭାଇ ଚାଇଁ ଚଡ଼କ,
ମନଟି ତୁମର
ମୁକୁଳା ଯଦି
ସବୁଆଡ଼େ ଦିଶେ ସଡ଼କ ।



*Digitized by srujanika@gmail.com*

# ଆସିଲା ସୁଆତି ବେଳ

ରଥ ଗଡ଼ିଗଲା
ଚକ ଗଡ଼ିଗଲା
ଆଷାଢ଼ ଗଡ଼ିଲା ଥିରି,
ମେଘକୁ ବିଧାଏ
ପକାଇ ବିଜୁଳି
ହସିଲା କିଇରି କିରି ।



ମେଘ ଦୁଲୁକିଲା
ମାଟି ଦୁଲୁକିଲା,
ଆସିଲା ସୁଆତି ବେଳ,
ହିଡ଼ଗଡ଼ି ଡେଇଁ
ଧାଇଁଲା ପବନ
ଚାଲିଲା ବରଷା ଖେଳ ।

ଘଡ଼ଘଡ଼ି ଦେଲା
ବଜେଇ ବାଜା,
ବେଙ୍ଗ ରଡ଼ିକଲା
ହେଲି ମୁଁ ରାଜା ।



Digitized by srujanika@gmail.com

# ପଛକୁ ହଉକି ପହିଲେ

ଚାପୁଡ଼ାଏ ଦେଲେ
ବିଧାଏ ଥୁଆ
ବିଧାଏ ମାଇଲେ ଗୋଇଠେ,
ଗୋଡ଼ି ଫୋପାଡ଼ିଲେ
ପଥର ଥୁଆ
ଆପେ ହୁଏ ତାହା ପଇଠେ ।

ମାରି ଖସିଯିବ
ନ ଭାବ କେବେ
ପର ପାଇଁ ଫାଶ ଥୋଇଲେ,
ନିଜେ ଫସିଯିବ
ସେଇ ଫାନ୍ଦରେ
ପଛକୁ ହଉ କି ପହିଲେ ।

ଫୁଲ ଫୁଟୁଥାଏ
ଛାଆଁକୁ ଛାଆଁ
କିଏ ଲୋଡ଼ୁ ଅବା ନ ଲୋଡ଼ୁ,
ଗଛ ଛାଇଦିଏ
ମେଲାଇ ଡାଳ
କେହି କୋଡ଼ୁ ଅବା ନ କୋଡ଼ୁ ।

ମେଘ ବରଷଇ ଜଳ;
ପର ଉପକାରେ
ମନ ହାଲୁକା
ମଣିଷପଣର ଫଳ ।



Digitized by srujanika@gmail.com

# ସମୟ କାହାକୁ ନାହିଁ

ସାଇକେଲ କହେ
ହେଏ ବାଟୋଇ
ତୁ' କଡ଼େଇ କଡ଼େଇ ଥାଆ,
ସ୍କୁଟର ଡାଗିଦେ
ସାଇକେଲକୁ
ତୁ' ଏଡ଼େଇ ଏଡ଼େଇ ଯାଆ ।

ମଟର ବୋଲଇ
ସ୍କୁଟର୍ ଶୁଣ୍
ତୁ' ଆଡ଼ ହୋଇ ମତେ ଥିବୁ,
ଟ୍ରକ୍ ବତାଏ
ମଟର ଆରେ
ତୁ' ବାଟ ଛାଡ଼ି ମତେ ଯିବୁ ।

ବାଟୋଇ କହଇ
ହଉରେ ହେଲା,
ବାଟ ଚଲା ଏବେ
କୁଆଡ଼େ ଗଲା,
ସଭିଏଁ ସଅଳ ପାଇଁ;
ଜଲ୍‌ଦି ଜଲ୍‌ଦି
ଛାଡ଼ନ୍ତି ଡାକ
ସମୟ କାହାକୁ ନାହିଁ ।



Digitized by srujanika@gmail.com

# ପାଠକୁ ଡାକିବ ଶାଠକୁ ଡାକିବ

'ପାଠ', 'ଶାଠ' ବୋଲି ଦୁଇଟି ପିଲା
ରହିଥିଲେ ପାଖାପାଖି,
'ଶାଠ' ବଖଡ଼ିଆ ହୋଇଲେ ବେଶି
'ପାଠ' ହୁଏ ତା'ର ସାକ୍ଷୀ ।

'ପାଠ' ବହି ଧରି ପଢ଼ିଲେ ବସି
'ଶାଠ' ମାରୁଥାଏ ଡିଆଁ,
ଖେଳ ଖେଳୁଥାଏ ବେଳେ ଅବେଳେ
କେଉଁଠି ଲିଭାଏ ନିଆଁ ।

'ପାଠ' ଶିଖେ କଥା ବହି ପଢ଼ାରୁ
'ଶାଠ' ଶିଖେ ଅନୁଭବେ,
ଜ୍ଞାନ ଲାଭ ପାଇଁ ଉଭୟେ ଲୋଡ଼ା
ଜାଣି ରଖ ଭାଇ ଏବେ ।

ଖାଲି ପଢ଼ିବନି ଖାଲି ଖେଳିବନି
ନ ହେଲେ କିଇଲିବିଲି,
ପାଠକୁ ଡାକିବ ଶାଠକୁ ଡାକିବ
ହସି ଦେବେ ଖିଲି ଖିଲି ।



Digitized by srujanika@gmail.com

# ଦେଏରେ ଟୁକୁନା ଗିଳିଦେ

ଦହି ଅଦା ଦିଆ
ପଖାଳ ଭାତ,
ପାଟିକୁ ସୁଆଦ
ଦେହକୁ ହିତ ।

ସାଥିରେ ଚହିଁକି
ଗରମ ଭଜା,
ବାଇଗଣ ପୋଡ଼ା
ବଢ଼ିଆ ମଜା ।



କୋଶଳା ଶାଗକୁ
କଖାରୁ ବଡ଼ି,
ଠାକରା ଆମ୍ବୁଲ
ଠେଲିବ ତଡ଼ି ।

ଚକ୍ରଧର ଚୋଟ ପକେଇ;
ଦେଏରେ ଟୁକୁନା
ଗିଳିଦେ ଗୁଣ୍ଡା
କାହାକୁ ରହିଛୁ ତକେଇ ।



Digitized by srujanika@gmail.com

# ଗୀପ ଗୋଟା ଗୋଟା ଚାଲିଲା ସେଠି

ଆଈ ଡାକ ଦେଲେ
ବାବୁନି ଆ'ରେ
ଏଇଠିକି ଆସ ଧନ;
ଗୀତ ଶୁଣିବୁ କି
ଗପ ଶୁଣିବୁ
କହ କୋଉଥିରେ ମନ ।



ଗପରେ କହିବି
ଦେଶ ବିଦେଶ
ବାଘ ଭାଲୁ ଭୂତ କଥା;
ଗୀତରେ ଗାଇବି
ଧୋଓ ବାଇଆ
ତହିଁ ପରେ କେତେ ନଥା ।

ବାବୁନି କହିଲା
ଆଈ ମ ଆଈ
ଗୀତ ଗପ ଯୋଡ଼ି ଯାଡ଼ି;
ମିଶେଇ ମାଶେଇ
କହଗୋ 'ଗୀପ'
ନିଦ ଆଇଲାଣି ମାଡ଼ି ।

ଆଈ ନାତି ହେଲେ ଖୁସ;
ଗୀପ ଗୋଟା ଗୋଟା
ଚାଲିଲା ସେଠି
ନିଦ ହୋଇଗଲା ଫୁସ୍ ।



Digitized by srujanika@gmail.com

# ଖରା ପିଟୁଚି ଗିନି

ଆମ୍ବ ବଉଳ ବାସନା ପାଇ
କୋଇଲି ଡାକେ କୁଉ,
ବାଉଁଶ ଝାଡ଼ ଭିତରେ ପଶି
ପବନ ଡାକେ ସୁଉ ।

ଗଛବୁରୁଛ ତୋଟା ଗହଳ
ସବୁଠି ନୂଆ ଭାବ,
ବସନ୍ତପକ୍ଷୀ ହଳଦୀ ମାଖି
ମଧୁରେ ଛାଡ଼େ ରାବ ।

ପବନ ଲାଗେ ଥଣ୍ଡା ଗରମ
ଆସେ ବସନ୍ତ ଋତୁ,
ମନରେ ଜାଗେ ଉଲୁସା ପଣ
ଲାଗଇ କୁତୁକୁତୁ ।

ତାଆ ଧିନିକିଧିନି,
ବରଷା ଶୀତ
ଗଲେଣି ଶୋଇ
ଖରା ପିଟୁଚି ଗିନି ।



Digitized by srujanika@gmail.com

# ମରତେ ଶରତ ଆସିଲାଣି

ବରଷା ବଉଦ ଖସିଲାଣି,
ନିଗିଡ଼ା ଅଶିଣ ପଶିଲାଣି,
ରୁପାକାତି ଖରା
ବୋଳିହେଇ ଦେହେ
କାଶତଣ୍ଡୀ ଫୁଲ ହସିଲାଣି ।



ମରତେ ଶରତ ଆସିଲାଣି,
ଦଶରା ଭାବରେ ଭାସିଲାଣି,
ନିଳେଇ ଆକାଶ
ଧୂସେଇ ଧରଣୀ
ମାଆର ମହକେ ବାସିଲାଣି ।

କୁଂଭାଟୁଆ ଡାକେ
ଖୁଉକୁ ଖୁକ୍,
ରେଳଗାଡ଼ି ଚାଲେ
ଛୁଉକୁ ଛୁକ୍ ।



Digitized by srujanika@gmail.com

# ନଥା ପାଲଟୁ କଥା

ଆ' କା' ମା' ଭୈ    ବନ୍ଦାଣ ଗାଇ
ପଟୁକା ଦିଏ ଠେଲି,
ସାଧବ ବୋଲି    ନିଜକୁ କହେ
ଗରବେ ଯାଏ ଫୁଲି ।

ଓଡ଼ିଆ ଯଦି    ପୂରୁବେ ଥିଲା
ଏଡ଼େ କାଢୁଆ ଜାତି,
ଏବେକୁ କିଆଁ    ଏଡ଼େ କୋଡ଼ିଆ
ତାହାରି ଛୁଆ ନାତି ?



ଜାଗ୍ ଓଡ଼ିଆ    ଜାଗ୍ ଆଜିରେ
ଖେଦି ଯା' କ୍ଷିତି ସାରା,
ଆପଣା କଳା    କାରିଗରୀ ତୁ
ମେଲି ଦେ ସାରା ଧରା ।

ନଥା ପାଲଟୁ କଥା,
ଓଡ଼ିଆ ଯାଉ
ଦେଶ ବିଦେଶ
ଟେକୁ ଆପଣା ମଥା ।



Digitized by srujanika@gmail.com

# ନିଚିପଡ଼ ହେଲା ଧରା

ଆଷାଢ଼ ଶ୍ରାବଣ
ମୁଣି ଫିଟେଇ,
ଝରଝର ପାଣି
ଦେଲେ ବୁହାଇ,
ଭୋଦୁଅ ଢାଳିଲା ଖରା;
ଆସିଲା ଯେମିତି
ଅଶିଣ ମାସ
ନିଚିପଡ଼ ହେଲା ଧରା ।



ଶରତ ଖେଳିଲା
ପସରା ମେଲି,
ଆକାଶ ଛାତିରୁ
ବଉଦ ଠେଲି,
ଜହ୍ନକୁ ମାଜିଲା ବସି;
ଦଶରା ଶେଷରେ
ପୂନେଇ ଚାନ୍ଦ
ଠୋ'କିନା ଦେଲା ହସି ।



ବଧୁଲି ଫୁଲ
ଟୁଉକୁ ଟୁକ
କଇଁଫୁଲଟି ଫିକ୍,
ଗଛବୁରୁଛ
ପାଣି ପବନ
ସକଳେ ଚିଇକି ମିକ୍ ।



Digitized by srujanika@gmail.com

# ଆସରେ ପୂଜିବା ଆସ

ମାଆ ସରସ୍ୱତୀ
ହାତରେ ବୀଣା,
ପାଠ ମାଆ ବୋଲି
ଜଗତ ଜିଣା,
ତୁଷାର ଧବଳ ବାସ;
ଧଳା ପଦୁଅଁକୁ
ଧୋବିଲା ହଂସ
ଆସରେ ପୂଜିବା ଆସ ।



ବୁଦ୍ଧି ଆଲୁଅ ସେ
ଆଲୋକ ଶିଖା,
ସୁନ୍ଦର କୋମଳ
ଜୋଛନା ରେଖା
ଅଜ୍ଞାନ ଅନ୍ଧାରେ ବାଟ;
ଗୋଟିଏ ହାତରୁ
ଅଭୟ ଝରେ
ଆଉ ଗୋଟିକରୁ ପାଠ ।

ମାଆ ମାଆ ପଡ଼େ ହୁରି;
ବାଟ ଦିଅ ମାଆ
ବିବେକ ଦିଅ
ମନ ଆମ ଯାଉ ପୂରି ।



Digitized by srujanika@gmail.com

# ଚାଙ୍ଗୁଡାକେ ଚଟ ଚଟ

ଠୁଉକୁ ଠୁକା,
ସାଗୁଆଡି ଝୋଳ
ଜୁଉକୁ ଜୁକା
କିଏ ଖାଇବରେ କହ;
ମିଠା ପଲୋଉକୁ
ମାଛ ମହୁର
କ୍ଷୀରୀ ବାସେ ମହମହ ।



ଚାଆଉଁ ଚାଉଁ,
ମେଘ ଫଣଫଣ
ଫାଆଉଁ ଫାଉଁ
ବରଜାତି ହଟହଟା;
ବରବାପ ମୁହଁ
ଅଥାର ହାଣ୍ଡି
ଝିଅ ବାପ ମୁହଁ ଖଟା ।

ଚାଙ୍ଗୁଡାକେ ଚଟ ଚଟ;
ବର ଆଂଟିଅଛି
ବାହା ମୁକୁଟ
କାନ କରେ ରଟରଟ ।



Digitized by srujanika@gmail.com

# ଟୁମା କଖାରକୁ ଟିମା କଲରା

ଡାଆଣି ଡାଡାଣି ଡେଇଁ,
ଘଣ୍ଟ ବଜାଉଛି
ଘନ ଭାଇନା
ଠାକୁର ମଣ୍ଡପ ଠେଇଁ ।

ଡାଆଉଁ ଡାଡାଉଁ ଡାଉଁ,
ଦିଅହେ ଗୋସେଇଁ
ପୂଜାଟା ସାର
ପ୍ରସାଦ ଟିକିଏ ପାଉଁ ।



ଧଅଡ଼ ଧଧଡ଼ ଧଡ଼,
ଆମ ଗାଆଁ ଗାଡ଼ି
ବଡ଼ ଧଡଡ଼ା
ଚାଲଇ ଖଅଡ଼ ଖଡ଼ ।

ଟଅପ ଟପର ଟପ,
କିଏ ଗୋଡ଼େଇଛି
ବୁଢ଼ା ବେଙ୍ଗକୁ
ଡେଉଁଛି ଖଅପ ଖପ ।

କାକର ପଡ଼ିଲା ଥିରି,
ଟୁମା କଖାରୁକୁ
ଟିମା କଲରା
ହସିଲେ କିଇରି କିରି ।



Digitized by srujanika@gmail.com

# ନାଉରି ଚାହିଁଲା ଚୁପ୍

ନାଆ ବାହୁଥିଲା
ନାଉରିଆ,
ନଈ ପାଣି ଥିଲା
ଗହୀରିଆ ।



ସୁନାମାଛ ତହିଁ
ଖେଳୁଥିଲା,
କିରି କିରି କରି
ହସିଦେଲା ।

ଗହୀରିଆ ପାଣି
ସାଉଁ ସାଉଁ,
ବୁଡ଼ିଯିବ ହାତୀ
ଚାହୁଁ ଚାହୁଁ ।

ଖେଳିଗଲା ହସ
ସାଇଁ ସାଇଁ,
ପଳେଇଲା ମେଘ
ଧାଇଁ ଧାଇଁ ।



ହାତୀଦେହ ପରି
ଗୁମୁଗୁମା,
ସବୁଆଡ଼େ ପାଣି
ଟୁମୁଟୁମା ।



ନାଉରି ଚାହିଁଲା ଚୁପ୍;
ସୁନାମାଛ ଏବେ
ମୁହଁଟି ଦେଖାଇ
ବୁଡ଼ବନ୍ ମାରିଲା ଟୁପ୍ ।





ଏଇବେଳେ ମେଘ
ଘଡ଼ଘଡ଼ି,
ଆସିଗଲା ମାରି
ଚଡ଼ଚଡ଼ି ।



Digitized by srujanika@gmail.com



"ମାଛ ମାନେ ସବୁ ହସିଲେ ପେଁ" ପିଲାମାନଙ୍କ ପାଇଁ ଲିଖିତ ଏକ ଶିଶୁଗୀତ ସଂକଳନ । ଏଥିରେ ଛୋଟ ଛୋଟ ଗୀତ ମାଧ୍ୟମରେ ବିଛାଯାଇଛି ଅନେକ ଝକମକି । ପ୍ରତିଟି ଝକମକି ପଥର ଭିତରେ ଲୁଚି ରହିଛି ଟିକି ଟିକି ଆଲୁଅର ଟୁକୁରା । ଯେ କୌଣସି ପିଲା ପାଇଁ ବାସ୍ତବତା ଅପେକ୍ଷା କଳ୍ପନାର ନୂଆ ଭାବନା ଓ ନୂଆଭାଷା ଅଧିକ ପ୍ରିୟ । ଏପରିକି ସେଇ ଗୋଟିଏ କଥାକୁ ପିଲାମାନେ ନିଜର କାଳ୍ପନିକ ଦୃଷ୍ଟିକୋଣରୁ ନୂଆ ନୂଆ ନାଆଁ ଦେଇ ଡାକନ୍ତି । ସଂକଳନର ଗୀତଗୁଡ଼ିକ ସେପରି ଭାବଧାରାର ଅନୁଗାମୀ ବୋଲି ବୁଝିବାକୁ ହେବ ।

ଦାଶ ବେନହୁର, ଓଡ଼ିଆ ସାହିତ୍ୟର ଏକ ଜଣାଶୁଣା ନାମ । ଶିଶୁ-କିଶୋର ମାନଙ୍କ ପାଇଁ ଲିଖିତ ତାଙ୍କର ପ୍ରତିଟି ସୃଷ୍ଟିରେ ଉଭୟ ଆନନ୍ଦ ଓ ଆଲୋକର ସମ୍ମିଶ୍ରଣ ବେଶ୍ ମନଛୁଆଁ । ବାଳୁତ ଜୀବନର ବିସ୍ତାରିତ ସବୁଜ ଇଲାକାରେ ଉଙ୍କିମାରୁଥିବା ଅସୁମାରି ପ୍ରଶ୍ନ ହିଁ ତାଙ୍କ ଲେଖକୀୟ ବାସ୍ତବତାକୁ ପ୍ରେରଣା ପ୍ରଦାନ କରେ ।

ସାଂପ୍ରତିକ ଠିକଣାଃ
"କଥାକାର", ୬ମ-୧୬୧, ଶୈଳଶ୍ରୀ ବିହାର, ଭୁବନେଶ୍ୱର-୭୫୧୦୨୧



କାଞ୍ଚନ, ଗଜପତି ନଗର,
ସୁତାହାଟ, କଟକ-୭୫୩୦୦୧

ISBN 978-81-86475-60-7

Digitized by srujanika@gmail.com